ପୁଟୁଳି ଧରି ଯେମିତି ଅନାସକ୍ତ ଭାବରେ ବାହାରି ଆସିଲି । ରାତିରେ କୋଟିପତି ପୁଣି ବିଷାଦଗ୍ରସ୍ତ ହେବାରୁ ବାରବୁଲାକୁ ପୋଖରୀ କୂଳରୁ ଘରକୁ ଆଣିଲେ ଓ ବାରବୁଲା ନାନା ହସ କଥା କହି ତାଙ୍କ ମନକୁ ହାଲ୍‌କା କଲା । ସକାଳ ହେବାରୁ ସେ ତାହାର ଆପେ ଆପେ ଖୁସି ମନରେ ପୁଟୁଳିଟି ଧରି ବାହାରିଗଲା । ଯେମିତି ସେ ତାଙ୍କର କାମ ବଡ଼ ସୁନ୍ଦର ଭାବରେ ସମ୍ପନ୍ନ କରିଛି । ରାତି ହେବାରୁ ବାରବୁଲା ଆପେ ଆପେ ଯାଇ କୋଟିପତିର ଘର ଦୁଆର ମୁହଁରେ ହାଜର । ସେ ଜାଣେ ଯେ କୋଟିପତି ତାକୁ ନିଶ୍ଚେ ଖୋଜି ବାହାରିବେ । କୋଟିପତି ସତକୁସତ ସେଇଥିପାଇଁ ବାହାରିବାରୁ ବାରବୁଲା ତାଙ୍କୁ ହସି ହସି ଅଭିବାଦନ କରି ଘରଭିତରକୁ ଗଲା । ସକାଳୁ ସେ ଆପେ ଆପେ ବାହାରି ଆସିଲା ମହାଖୁସିରେ । ଭାବ ଯେମିତି ତାକୁ ଗୋଟେ ଭଲ କାମ ମିଳିଯାଇଛି । ରାତିରୁ ସକାଳ ଯାଏ ଗୋଟାଏ ଲୋକକୁ ଆନନ୍ଦ ଦେବା ଉଚିତ ।

ଚାର୍ଲିଙ୍କ ହାସ୍ୟରସ ଅଦ୍ଭୁତ । ହତ୍ୟାକାରୀ, ଲୋଭୀ, କ୍ରୋଧୀ, ଚୋର ଡକେଇତି ସମସ୍ତଙ୍କ କାର୍ଯ୍ୟ ହାସ୍ୟକର । ଦେଖିଲେ କାହାରି ଉପରେ ଘୃଣା ହୁଏ ତ ନାହିଁ, ବେଦନା ଜାଗେ । ସମସ୍ତଙ୍କୁ କୁଣ୍ଢାଇ ପକାଇ କହିବାକୁ ଇଚ୍ଛା ହୁଏ, ଏ ଦୁନିଆରେ ସମସ୍ତେ ଭଲ । ମନେହୁଏ ମଣିଷର ଯେତେ ଦୁର୍ଗୁଣ ଅଛି ସେ ତା ନିଜର କରିନାହିଁ । ଯେଉଁ ମାଟିରୁ ମଣିଷର ଜନ୍ମ ସେଇ ମାଟିରେ ଏ ଭାବ ଅଛି, ନ ହେଲେ ତା ଭିତରେ ସେ ଆସନ୍ତା କୁଆଡ଼ୁ । ପୁଣି ଏ ମାଟି ତ ଆସିଚି ସୂର୍ଯ୍ୟଠୁ । ଏସବୁ ଭାବ ତେଣୁ ସୂର୍ଯ୍ୟଠି ଅଛି । ସୂର୍ଯ୍ୟ ତ ଆସିଚି ଆଉ ଏକ ବଡ଼ଠାରୁ ବଡ଼ ସୂର୍ଯ୍ୟରୁ, ତେଣୁ ସେ ଭାବ ସେଠି ବି ଅଛି । ଏମିତି ସାରା ବିଶ୍ୱରେ ତ ଭଲମନ୍ଦ ତତ୍ତ୍ୱଭାବରେ ବ୍ୟାପି ରହିଚି ।

ବାରବୁଲାର ଅନାସକ୍ତ ଭାବ ଦେଖି ଦର୍ଶକର ଆଧ୍ୟାତ୍ମିକ ଇପ୍‌ସା ଜାଗ୍ରତ ହୁଏ, ତାର ହାସ୍ୟରସ ଦେଖି କାରୁଣ୍ୟରେ ହୃଦୟ ଭରିଯାଏ ।

ହାସ୍ୟରସ ନେଇ ଯଦି ଏକ କ୍ଷୁଦ୍ରଗଳ୍ପ ବା ଉପନ୍ୟାସ ଲେଖା ହୁଏ, ତେବେ ନାୟକ ନିଶ୍ଚୟ କ୍ଲାଉନ ଓ ନିଜଆଡ଼କୁ ଚଳିବ । ନିଶ୍ଚୟ ବାହୁଲ୍ୟ ରହିବ । ଅବଶ୍ୟ ଅନ୍ୟ ସାଧାରଣ ଗଳ୍ପ ବା ଉପନ୍ୟାସରେ ଉଚ୍ଚକୋଟୀର ହାସ୍ୟରସ ସୃଷ୍ଟି ହୋଇ ପାରେ । କିନ୍ତୁ ତାହା କେବଳ ସ୍ଥାନେ ସ୍ଥାନେ । ହାସ୍ୟରସ ନେଇ କ୍ଷୁଦ୍ରଗଳ୍ପ ଓଡ଼ିଆରେ ଅଛି । ଉପନ୍ୟାସର ମଧ୍ୟ ସମ୍ଭାବନା ଅଛି । କିନ୍ତୁ ପାଠକ ଏଥିପାଇଁ କେତେଦୂର ପ୍ରସ୍ତୁତ ସେ ଭିନ୍ନ କଥା ।

ହାସ୍ୟରସର ହେଲେ ହେଁ କ୍ଷୁଦ୍ର ଗଳ୍ପ ବା ଉପନ୍ୟାସ ତାତ୍ତ୍ୱିକ ହୋଇ ପାରିବ । ଚ୍ୟାପ୍‌ଲିନଙ୍କ ପ୍ରତ୍ୟେକ ଚଳଚ୍ଚିତ୍ର ତ ତତ୍ତ୍ୱ ଉପରେ ଆଧାରିତ । କୁଇକ-ସୋଟ୍‌ଙ୍କ ଜୀବନ କାହାଣୀରେ ତ ତତ୍ତ୍ୱ ଆଲୋଚନା ପୃଷ୍ଠା ପୃଷ୍ଠା ଧରି ଚାଲିଛି । ପୁର୍ବେ

କ୍ଷୁଦ୍ର ଗଳ୍ପ ବା ଉପନ୍ୟାସରେ ତାତ୍ତ୍ୱିକ ଆଲୋଚନା ଏକ ଦୂଷଣୀୟ ବ୍ୟାପାର ଥିଲା । ଆଧୁନିକ ଯୁଗରେ ଏ କଥା ସ୍ୱୀକାର କରାଯାଏନା । ମଣିଷ ତତ୍ତ୍ୱକୁ ବୁଦ୍ଧିରେ ବୁଝେ । କିନ୍ତୁ ସେ ବୁଝା ଯଦି ଆବେଗ, ବେଦନା ସୃଷ୍ଟି ନ କରେ ତେବେ ସେ ବୁଝା ସ୍ଥାୟୀ ହୁଏନା, ଉଦ୍‌ଘା ଜାତ କରାଏନା । ଉପ୍‌ସା ନ ଥିଲେ ମଣିଷର ବିକାଶ ହୁଏ ନାହିଁ । ଏପରି କି ବିଦ୍ରୋହ ବା ବିପ୍ଳବ ବି ହୋଇ ପାରେନା । ଆବେଗ ବା ବେଦନା ଜାଗ୍ରତ କରାଇବା ଏକମାତ୍ର ସାହିତ୍ୟିକର କାର୍ଯ୍ୟ । ବୈଜ୍ଞାନିକ ଅର୍ଥନୈତିକ, ଐତିହାସିକ ଆଦି ସବୁ କ୍ଷେତ୍ରରେ ମଣିଷ ଆଧୁନିକ ଯୁଗର ଯେତେ ତତ୍ତ୍ୱ ପାଉଛି ସେ ସବୁ ମଣିଷର ଜୀବନ ସହିତ ଏତେ ଘନିଷ୍ଠ ଭାବରେ ସଶ୍ଳିଷ୍ଟ ଯେ ଆଧୁନିକ ସାହିତ୍ୟ ସେସବୁକୁ ଏଡ଼ାଇ ଦେଇ ସାହିତ୍ୟ ସୃଷ୍ଟି କରି ପାରେନା । ସ୍ୱାଭାବିକ ଭାବରେ ସେ ସବୁ ଆସି ଯାଉଛି । ମଣିଷ ଜୀବନର ପରିସର ଏତେ ବଢ଼ି ଯାଇଛି ଯେ ପରମାଣୁ ତତ୍ତ୍ୱ ବା ଆପେକ୍ଷିକବାଦ (relativity) ତାକୁ ଜୀବନ ଧାରଣ ପାଇଁ ଜାଣିବାକୁ ପଡ଼ୁଛି । ସେ ସବୁକୁ ତେଣୁ ସାହିତ୍ୟିକ ଦୂରେଇ ରଖିବ କପରି ?

କପରି ସେ ସବୁ ତତ୍ତ୍ୱକୁ ଆବେଗମୟ ଭାବରେ ଓ ଲୀଳା ମାଧ୍ୟମରେ ପ୍ରକାଶ କରିବାକୁ ହେବ ତାହା ନିର୍ଭର କରେ ସାହିତ୍ୟିକର କଳା ଜ୍ଞାନ ଉପରେ । କଳା କିଛି ଊଣା ପଡିଲେ ବି କିଛି କ୍ଷତି ନାହିଁ । ଏପରି କ୍ଷୁଦ୍ର ଗଳ୍ପ ଓ ଉପନ୍ୟାସ ଅଛି ଯାହା ତାତ୍ତ୍ୱିକ ଆଲୋଚନାରେ ପୂର୍ଣ୍ଣ । କିନ୍ତୁ ସେ ଆଲୋଚନା ଏତେ ଅନୁଭବୀ ଯେ ଆବେଗ ସୃଷ୍ଟି କରୁଚି ।

ଆଧୁନିକ ସାହିତ୍ୟର ପରିସର ଏତେ ବ୍ୟାପକ ଯେ ପୂର୍ବର କୌଣସି ଫରମୁଲା ବା ରୀତି ତା ପ୍ରତି ପ୍ରଯୋଜ୍ୟ ନୁହେଁ । ନିଜର ଜ୍ଞାନ ଓ ବୁଦ୍ଧି ନିଜର ଅହଂ ସହିତ ମିଶି ନିଜ ଭିତରେ ଓ ବାହାରେ ଏତେ ଭୟାବହ ଅବସ୍ଥା ସୃଷ୍ଟି କଲାଣି ଯେ କାହାର ଜୀବନରେ କିଛି ମୂଲ୍ୟ ନାହିଁ । ମୂଲ୍ୟହୀନ ଅସହାୟ ମଣିଷ ଆଜି ପ୍ରେମ ଓ ଐକ୍ୟ ପାଇଁ ବ୍ୟାକୁଳ । ଫର୍ମ, ଅଲଙ୍କାର ପ୍ରତୀକ, ଉପମା, ଆଦିର ଚମତ୍କାରିତା ସୃଷ୍ଟି କରି ବା ଲେଖାକୁ ଦୁର୍ବୋଧ କରି ତାକୁ ଆଉ ଧପ୍‌ପା ଦେଇ ହେବ ନାହିଁ । ମଣିଷ ଆଜି ବ୍ୟାକୁଳ ଓ ଅସହାୟ ଭାବରେ ଡାକ ଛାଡ଼ୁଛି – ମୁଁ ମଲି, ମୁଁ ସରିଗଲି, ମୋତେ ପ୍ରେମ ଦିଅ, ଐକ୍ୟ ଦିଅ, ବେଦନା ଦିଅ, ମୋତେ ବଞ୍ଚାଅ ।

ମଣିଷର ଭୁମରି ଭୁମରି ଏ ଭୁପା କ୍ରନ୍ଦନକୁ ସାହିତ୍ୟିକ ଛଡ଼ା ଆଉ କିଏ ବୁଝିବ । ଗୁରୁଲି ବୁଝୁଥିଲେ । ଗୁରୁଲିଙ୍କୁ ଲିଜନ ଅଫ୍ ଅନର ଦେବାବେଳେ ତାଙ୍କ ବିଷୟରେ ପ୍ରଶସ୍ତି ପାଠରେ କୁହା ହୋଇଥିଲା—ତୁମେ ଅନନ୍ୟପ୍ରତିଭ । ଏହାଠାରୁ ମଧ୍ୟ ବଡ଼ କଥା, ତୁମେ ମାନବପ୍ରେମୀ । ତୁମ ସୃଷ୍ଟି ଦେଖି ପ୍ରାଣଭରି ଆମେ ହସିଚୁ,

ହୃଦୟସ୍ପର୍ଶୀ କାନ୍ଦଣା । ଆମକୁ ତୁମେ ଦେଇଛ ଦୁର୍ଲଭ ଅଶ୍ରୁଜଳ । ସାରା ଜୀବନ ତୁମେ ନିଜେ ଜଳି ମାନବ ସମ୍ମୁଖରେ ଧରିଚ ଆଶାର ଦୀପ । ଆମେ ତୁମକୁ ଶ୍ରଦ୍ଧା କରୁ, ଭଲ ପାଉ, ନିକଟତମ ସ୍ୱଜନ ମନେ କରୁ । ଆମର ସମସ୍ତଙ୍କ ଲକ୍ଷ୍ୟ ହିଁ ହେଉଚି ଶାନ୍ତି ଓ ସମସ୍ତଙ୍କ ଆଶା ହେଉଚି ବିଶ୍ୱ ଭ୍ରାତୃତ୍ୱ । × × × ଧନ୍ୟବାଦ ଚାର୍ଲି, ଧନ୍ୟବାଦ । (କୁଇକ୍‌ସୋଟ୍ ସ୍ରଷ୍ଟା ସେରଭାନ୍ତେଙ୍କ ପ୍ରତି ଏ କଥାଗୁଡ଼ିକ ଠିକ୍ ପ୍ରଯୋଜ୍ୟ) ।

ଚାର୍ଲିଙ୍କ 'ଦି ଗ୍ରେଟ୍ ଡିକ୍‌ଟେଟର' (The great Dictator)ର ଶେଷ ସଂଳାପ ହେଉଚି (ଜଣେ ନାପିତର ଜଣେ ଡିକ୍‌ଟେଟର ସହିତ ଚେହେରାରେ ସାଦୃଶ୍ୟ ଥିବାରୁ ତାକୁ ଭ୍ରମକ୍ରମେ ସ୍ୱାଗତ ଜଣାଇବାବେଳେ ନାପିତର ବକ୍ତୃତା)—ମୁଁ ସମ୍ରାଟ ହେବାକୁ ଚାହେଁନା, ଶାସକ ବା ଦିଗ୍‌ବିଜୟୀ ବୀର ହେବାକୁ ଚାହେଁନା, ମୁଁ ସକଳ ମାନବକୁ ସାହାଯ୍ୟ କରିବାକୁ ଚାହେଁ । ଆଜି ଲୋଭ ମାନବ ଆତ୍ମାକୁ ବିଷାକ୍ତ କରି ଦେଇଛି । ଆଜି ମଣିଷ ମଣିଷ ଭିତରେ, ଦେଶ ଦେଶ ଭିତରେ ଘୃଣାର ପାଚେରୀ ମୁଣ୍ଡ ଟେକିଚି । ତେବେ ବି ହତାଶ ହୁଅନା । ଏଇ ଘୃଣା ଏଇ ଲୋଭ ଦିନେ ନିଶ୍ଚିହ୍ନ ହୋଇ ଯିବ । ଏଇ ସାଧାରଣ ମଣିଷ ହିଁ ଆନନ୍ଦ ଆଣି ପାରିବ, ଜୀବନକୁ ସୁନ୍ଦର ଓ ସ୍ୱାଧୀନ କରି ପାରିବ । ସେ ଶକ୍ତି ଏଇ ତଥାକଥିତ ସାଧାରଣ ମଣିଷର ଅଛି । ଆସ ଆମେ ଏକ ହେଉ, ନୂତନ ପୃଥିବୀ ପାଇଁ ପ୍ରାଣପାତ କରୁ । ଦେଖ, ଦେଖ, ମେଘ ଅପସରି ଯାଉଛି, ସୂର୍ଯ୍ୟ ଉଠୁଚି, ଆମେ ଅନ୍ଧକାରରୁ ଆଲୋକକୁ ଯାଉଛୁ । ଆମେ ଯାଉଛୁ ନୂତନ ଜଗତକୁ ଯେଉଁଠି ଲୋଭ ନାହିଁ, ଘୃଣା ନାହିଁ । ମଣିଷର ଆତ୍ମା ଡେଣା ମେଲି ଉଡ଼ି ଯାଉଚି ଇନ୍ଦ୍ରଧନୁର ଦେଶକୁ, ଆଲୋକର ଦେଶକୁ, ଦେଖ, ଦେଖ ।

(କୁଇକ୍‌ସୋଟ୍ ମଧ୍ୟ ଏମିତି ସ୍ୱପ୍ନ ଦେଖୁଥିଲେ)

ଏଇ ସ୍ୱପ୍ନ ହେଉଚି ସାହିତ୍ୟର ଲକ୍ଷ୍ୟ ସେ ଯେଉଁ ରସରୁ ସାହିତ୍ୟ ହେଉନା କାହିଁକି । ସ୍ୱପ୍ନ ହିଁ ଆଣେ କାରୁଣ୍ୟ । ସାହିତ୍ୟରେ କାରୁଣ୍ୟ ନାହିଁ ତ କିଛି ନାହିଁ ।

